ପଞ୍ଚଦଶ ବାର୍ଷିକ

କଳିଙ୍ଗଭାରତୀ ଭଞ୍ଜ ଜୟନ୍ତୀ ସପ୍ତାହ

ପ୍ରଥମ ଦିବସର ପୁରୋଧା

ପ୍ରତିଷ୍ଠାତା ସଭାପତି

ଶ୍ରୀ ବିଚ୍ଛନ୍ଦଚରଣ ପଟ୍ଟନାୟକଙ୍କ

# ଅଭିଭାଷଣ

ଭଦ୍ର ମହିଳା ଓ ଭଦ୍ର ମହୋଦୟଗଣ !

ବର୍ଷ ବର୍ଷ ହେଲା ବୌଦ୍ଧ ବର୍ଷକାଳ ଏହି ଜାତୀୟ ପୁଣ୍ୟ ତିଥିରେ ଆପଣମାନଙ୍କ ସଙ୍ଗ ଲାଭକରି ମୁଁ କୃତାର୍ଥ ହୋଇଅଛି । ଆଜି କଳିଙ୍ଗଭାରତୀ ଭଞ୍ଜ ଜୟନ୍ତୀର ପଞ୍ଚଦଶ ବାର୍ଷିକ ମହୋତ୍ସବରେ ମଧ୍ୟ ପୂର୍ବପରି ପୂର୍ଣ୍ଣ ସହଯୋଗ ପ୍ରଦାନ କରି ଆପଣମାନେ ମୋର କୃତଜ୍ଞତାଭାଜନ ହୋଇ ଅଛନ୍ତି । ଏ ପୁଣ୍ୟତିଥି ପ୍ରତିଭା-ପୂଜା ତଥା ଜାତୀୟ ସାରସ୍ୱତ ଜୀବନର ସମୀକ୍ଷା ଦିବସ । ଏ ମହତ୍ କାର୍ଯ୍ୟର ସମ୍ପାଦନରେ ପରାତ୍ପର ପରମେଶ୍ୱର ଶ୍ରୀଜଗନ୍ନାଥ ମହାପ୍ରଭୁ ଆମ୍ଭମାନଙ୍କ ପ୍ରତି ସଦୟ ହୁଅନ୍ତୁ । ମା କଳିଙ୍ଗଭାରତୀ ବିଜୟଶ୍ରୀ-ବିମଣ୍ଡିତା ହୁଅନ୍ତୁ । ଜୟ ମା କଳିଙ୍ଗଭାରତୀ ଗାନରେ ଗଗନପବନ ମୁଖରିତ ହୋଇ ଉଠୁ ।

ସାହିତ୍ୟ ଜୀବନର ପ୍ରକାଶ ବିଶେଷ । ସାହିତ୍ୟକୁ ତାହାଁର ବ୍ୟାପକତା ଦେଇ ଜୀବନର ମୁକୁର ବୋଲି ଯଥାର୍ଥରେ ଅଭିହିତ କରାଯାଇଅଛି । ପ୍ରକାଶ ପ୍ରକାଶିତଠାରୁ ବିଚ୍ଛିନ୍ନ ହୋଇ ନ ପାରେ, ତେଣୁ ଜୀବନ ସହିତ ସାହିତ୍ୟ ଅଙ୍ଗାଙ୍ଗୀଭାବରେ ଜଡ଼ିତ । ଜୀବନ ସହିତ ନିବିଡ଼ ଭାବରେ ସଂଲଗ୍ନ ହୋଇ ଅବସ୍ଥାନ କରୁଥିବାରୁ ସାହିତ୍ୟର ନାମ ସାହିତ୍ୟ ହୋଇଅଛି । ଶତାବ୍ଦୀ ଶତାବ୍ଦୀ ଭରି ନିରଳସ ସାଧନା ଫଳରେ କଳିଙ୍ଗର ଜାତୀୟ ଜୀବନ ପୁଷ୍କଳ ବିକାଶ ଲାଭ କରିଅଛି । ପୃଥିବୀର ବିଭିନ୍ନ ଜାତି ଭଳି କଳିଙ୍ଗ ଜାତି ମଧ୍ୟ ଆତ୍ମବିକାଶ ନିମନ୍ତେ ଗୋଟିଏ ସ୍ୱତନ୍ତ୍ର ସରଣୀ ବାଛି ନେଇଅଛି । ଆତ୍ମବିକାଶର ସରଣୀରେ ବଶିଷ୍ଟତା ଥିଲେ ମଧ୍ୟ ମହାଭାରତୀୟ ମାନବିକତା ତଥା ବିଶ୍ୱ-ମାନବିକତାକୁ କଳିଙ୍ଗ ଉପେକ୍ଷା କରି ଏକଦେଶ-ଦର୍ଶିତାର ପଥରେ କଦାପି ହେଲେ ପଥିକ ହୋଇନାହିଁ । ବରଂ କଳିଙ୍ଗର ଧର୍ମଗୁରୁ ଉପଗୁପ୍ତଙ୍କ ମୈତ୍ରୀ ଓ ଅହିଂସାର ବାଣୀ ପ୍ରିୟଦର୍ଶୀ ଅଶୋକଙ୍କ ଜରିଆରେ ବିଶ୍ୱବ୍ୟାପୀ ପ୍ରସାର ଲାଭ କରିଥିବା ଇତିହାସପ୍ରସିଦ୍ଧ । ବୌଦ୍ଧଧର୍ମ ଆଗରୁ କରୁଣା ଓ ଅହିଂସାସର୍ବସ୍ୱ ଜୈନ ଧର୍ମର ମଧ୍ୟ କଳିଙ୍ଗ ପୀଠସ୍ଥଳୀ ହୋଇଥିଲା । ଶଙ୍କର, ରାମାନୁଜ ଓ ଚୈତନ୍ୟାଦି

ମହାପୁରୁଷମାନେ ପରବର୍ତ୍ତୀକାଳରେ କଳିଙ୍ଗରେ ଅବସ୍ଥାନ କରି ବିଶ୍ୱକୁ ମହୋଦାର ବୈଦିକ ଧର୍ମାଲୋକରେ ଉଦ୍‌ଭାସିତ କରି ଯାଇଅଛନ୍ତି । କଳିଙ୍ଗର ଜାତୀୟ ଜୀବନ ଯୁଗଯୁଗାବଧି ମହୋଦାର ଉଦାତ୍ତ ଆଦର୍ଶର ଅନୁବର୍ତ୍ତୀ ହୋଇଅଛି । କଳିଙ୍ଗର ପରମାରାଧ୍ୟ ଠାକୁର ଶ୍ରୀ ଜଗନ୍ନାଥଙ୍କଠାରେ ଯାବତୀୟ ଧର୍ମ ଉପଧର୍ମର ବିରାଟ ସମନ୍ୱୟ ଘଟିଅଛି ଏବଂ ଶ୍ରୀମନ୍ଦିର ଶିଖରରେ ପତିତପାବନବାନା ଉଡ୍‌ଡୀନ ରହି ଅନାଦିକାଳରୁ ବିଶ୍ୱର ପତିତମାନଙ୍କୁ ଗତି-ମୁକ୍ତିର ଅଭୟବାଣୀ ଶୁଣାଉଅଛି । ଶ୍ରୀଜଗନ୍ନାଥଙ୍କ ଅବାରିତ କରୁଣାର ପ୍ରତୀକରୂପେ ମହାପ୍ରସାଦ ଆଚଣ୍ଡାଳ ବ୍ରାହ୍ମଣ ସମସ୍ତଙ୍କର ସମାନ-ଭାବରେ ସେବ୍ୟ ହୋଇଅଛି । କଳିଙ୍ଗର ସାହିତ୍ୟ ଏକ ପକ୍ଷରେ ଉଦାର ବିଶ୍ୱ-ମାନବିକତାର ଓ ଅପର ପକ୍ଷରେ ଜଗତ୍ ପ୍ରପଞ୍ଚର ଊର୍ଦ୍ଧ୍ୱରେ ଅବସ୍ଥିତ ଚିନ୍ମୟ ରାଜ୍ୟର ସନ୍ଦେଶବାହକ ହୋଇ ଆସିଅଛି; ଅର୍ଥାତ୍ କଳିଙ୍ଗ ଜାତୀୟ ଜୀବନର ଏହି ଦୁଇ ଆଭିମୁଖ୍ୟକୁ ଉପଜୀବ୍ୟ କରି କଳିଙ୍ଗର ସାହିତ୍ୟ ପୁଷ୍ଟ ହୋଇଅଛି । ଯେଉଁଠି ଜଗତ୍ ପ୍ରପଞ୍ଚ ମଧ୍ୟରେ ମାନବୀୟ ସମ୍ଭୋଗର ଚିତ୍ର ଅଙ୍କିତ ହୋଇଅଛି, ସେଠାରେ ମଧ୍ୟ ତାକୁ ଚିନ୍ମୟ ରାଜ୍ୟକୁ ସୋପାନ ବୋଲି ଜ୍ଞାନ କରାଯାଇଛି । ପୁରୁଷାର୍ଥ ସାଧନକୁ ପରମ ପୁରୁଷାର୍ଥ ଲାଭର ଉପାୟ ବୋଲି ଗ୍ରହଣ କରାଯାଇଅଛି । କଳିଙ୍ଗରେ ବ୍ରିଟିଶ ପୂର୍ବ ଯୁଗରେ ରଚିତ ଶୃଙ୍ଗାରରସାଶ୍ରିତ କାବ୍ୟ-କବିତାରେ ଧର୍ମ-ଅବିରୁଦ୍ଧ କାମଙ୍କ ସ୍ପୃହାର ଚିତ୍ର ପ୍ରଦତ୍ତ ହୋଇଅଛି; କାରଣ ଧର୍ମର ନିୟନ୍ତ୍ରକ ପ୍ରଭାବ ସବୁ କ୍ଷେତ୍ରରେ କବିମାନଙ୍କ ଲେଖନୀକୁ ସଂଯତ କରୁଥିଲା । ସ୍ଥୂଳତଃ କଳିଙ୍ଗର ସାହିତ୍ୟ-ସୃଷ୍ଟି ନିର୍ମଳ ଆଦର୍ଶ ଉପରେ ସୁପ୍ରତିଷ୍ଠିତ । କଳିଙ୍ଗରେ ନିର୍ମଳ ଆଦର୍ଶହିଁ ଯୁଗେ ଯୁଗେ ସାହିତ୍ୟ ସୃଷ୍ଟିର ନିୟାମକ । ସାହିତ୍ୟ ସୃଷ୍ଟି ପ୍ରତି କଳିଙ୍ଗରେ ଜନମତ ଏପରି ଜାଗରୁକ ଥିଲା ଯେ ପ୍ରତିଷ୍ଠିତ ସାହିତ୍ୟାଦର୍ଶକୁ କେହି ହେଲେ ଏପଟ ସେପଟ କରିବାକୁ ସାହସୀ ହେଉ ନ ଥିଲେ । ପ୍ରତିଷ୍ଠିତ ଆଦର୍ଶରେ କାବ୍ୟକବିତା ଲେଖିବାକୁ କାବ୍ୟ-ବିଧାତାମାନେ ଅତ୍ୟନ୍ତ ଶ୍ଲାଘ୍ୟ ମନେ କରୁଥିଲେ ।

କବିସମ୍ରାଟ ଉପେନ୍ଦ୍ର ଭଞ୍ଜଙ୍କ ସମଯୁଗୀୟ ମହାକବି ଧନକୃଷ୍ଣ ଦାସ ତାଙ୍କ ଜୀବନରେ ଏହି ସାହିତ୍ୟାଦର୍ଶକୁ ସମ୍ମାନ ଦେଖାଇବାକୁ ଯାଇ ଉତ୍କଟ ନିର୍ଯ୍ୟାତନାର ସମ୍ମୁଖୀନ ହୋଇଥିବା କଥା ସମସ୍ତେ ବିଦିତ ଅଛନ୍ତି । ସେ ଦରିଦ୍ର ଥିଲେ; ରାଜ-ଅନୁଗ୍ରହ ଅର୍ଜନ କରିଥିଲେ ତାଙ୍କର ସକଳ ଦୁଃଖ ଦୂରୀଭୂତ ହୋଇ ପାରିଥାନ୍ତା । କିନ୍ତୁ ସାହିତ୍ୟାଦର୍ଶକୁ ଅକ୍ଷୁଣ୍ଣ ରଖିବା ନିମନ୍ତେ ସେ ଅଟଳ ରହି ରାଜ-ଅନୁଯୋଗକୁ ଜୁଗୁପ୍‌ସାରେ ଉପେକ୍ଷା କରିଥିଲେ । ତତ୍କାଳୀନ ଦୋର୍ଦ୍ଦଣ୍ଡ ପ୍ରତାପ ଗଜପତି ମହାରାଜା ଦିବ୍ୟସିଂହ ଦେବ ନିଜ ପ୍ରଶସ୍ତି ଲେଖିବାକୁ ଓ ତାଙ୍କ ନାମରେ କବିତାକୁ ଭଣିତା କରିବାକୁ ଧନକୃଷ୍ଣଙ୍କୁ ଅନୁରୋଧ କଲେ ଏବଂ ତାଙ୍କୁ ପ୍ରଲୋଭନ ଦେଖାଇ କହିଲେ—

ଶୁଣ ହେ କବି କୃଷ୍ଣ ଦାସ । ହୋଇଣ ଥିବ ଦିବ୍ୟ ବେଶ ॥
ସୁନ୍ଦର ମଧୁର କଠିନ । ଗୀତ କରିଣ ନାମେ ଭଣ ॥
ତୁମ୍ଭଙ୍କୁ କରିବା ପୌରୁଷ । (ତାହା ଶୁଣିଣ କୃଷ୍ଣ ଦାସ) ॥
ବୋଇଲା ଶୁଣ ନୃପନାଥ । କେବଳ ଦେବ ଜଗନ୍ନାଥ ॥
ଏ ପିଣ୍ଡ ବିକଅଛୁ ତାରେ । ଗୀତ ମୁଁ ନ ବୋଲେ ଆନରେ ॥
ଏ କଥା ଅନ୍ୟ ହେବ କାହୁଁ । ଦୁଃଖ ନ କରି ଆଜ୍ଞା ହେଉ ॥

ଏ ନିବେଦନ ପରେ ଦରିଦ୍ର ମହାକବି ଓ ଦୋର୍ଦ୍ଦଣ୍ଡପ୍ରତାପ ମହାରାଜାଙ୍କ ଉକ୍ତି-ପ୍ରତ୍ୟୁକ୍ତି ପ୍ରଣିଧାନଯୋଗ୍ୟ ।

ମହାରାଜା—

ତାହା ଶୁଣିଣ ଦଣ୍ଡଧର । ପୁଣି ବୋଇଲେ ଗୀତ କର ॥
ମୋ ନାମେ ଭଣିଲେ ଅବଶ୍ୟ । ଅନେକ ଦେବି ଗ୍ରାମ ଦେଶ ॥
ମୋ ରାଜ୍ୟେ ଦେବି ଅଧିକାର । ଦେଖ ମୁଁ ଜଗତ-ଈଶ୍ୱର ॥
ନୋହିଲେ ମରିବୁ ଅବଶ୍ୟ । ଛାଡ଼ ତୋ ଜୀବନର ଆଶ ॥
କେ ଆସି ରଖିବ କି ତୋତେ । ଏହା ତୁ କହୁଅଛୁ ମୋତେ ॥

ଧନକୃଷ୍ଣ--

ଦାସେ ବୋଇଲେ ତାହା ଶୁଣି । ଶୁଣ ହେ ନୃପ-ଚୂଡ଼ାମଣି ! ॥
ତୁମ୍ଭଙ୍କୁ ନାହିଁ ମୋର ଡର । ମୋ ପ୍ରଭୁ ବଳେ ବଳୟାର ॥
ଜଗତ ସୃଷ୍ଟି ଆନ ହେଲେ । ଗୀତ ମୁଁ ଆନକୁ ନ ବୋଲେ ॥
( ଦାର୍ଢ୍ୟତା ଭକ୍ତି )

କବିତା ବାଗ୍‌ଦେବୀଙ୍କ ବିଭୂତି । ନିଜ ପ୍ରୟୋଜନ ପାଇଁ ତାହା ମର୍ତ୍ତ୍ୟଲୋକର ଅଧିକାଂଶ ରାଜା ମହାରାଜାଙ୍କୁ ଉପାୟନରୂପେ ପ୍ରଦତ୍ତ ହୋଇ ନ ପାରେ । ଏ ଉପାୟନର ଗ୍ରହୀତା କେବଳ ସର୍ବଲୋକମହେଶ୍ୱର ଶ୍ରୀଜଗନ୍ନାଥ ମହାପ୍ରଭୁ । ଏ ଆଦର୍ଶ ତିନ ଶତାବ୍ଦୀତଳେ କାରାବାସ ଓ ନିର୍ଯ୍ୟାତନା ବରଣ କରି ଏହି କଳିଙ୍ଗର ଅନ୍ୟତମ ମହାକବି ଧନକୃଷ୍ଣ ଦାସ ପ୍ରତିଷ୍ଠା କରିଥିଲେ । ଯେଉଁ କବିତା ଶ୍ରୀ ଜଗନ୍ନାଥ ମହାପ୍ରଭୁଙ୍କ ଯୋଗ୍ୟ, ସେ କବିତା ଯେ ଆବିଳତାବିରହିତା ଓ ଦ୍ୱିଲୋକସାଧନୀ ହେବ, ଏଥିରେ ଆଉ ସନ୍ଦେହ କାହିଁ ?

କବିସମ୍ରାଟ ଉପେନ୍ଦ୍ର ଭଞ୍ଜ ମଧ୍ୟ କବିତାର ଏହି ଆଦର୍ଶରେ ପୂର୍ଣ୍ଣ ଅନୁପ୍ରାଣିତ ଥିଲେ । ସମୁତ୍କୃଷ୍ଟ କବିତାର ଦ୍ୱିଲୋକସାଧନୀ ବୃତ୍ତି ପ୍ରତି ସେ ସର୍ବଦା ଅବହିତ ହୋଇଥିଲେ ଏବଂ କୃଷ୍ଣଚରିତମୂଳକ "ଛାନ୍ଦ ଭୂଷଣ" କାବ୍ୟର ମଙ୍ଗଳାଚରଣରେ କବିତାର ଆଦର୍ଶ ବା ଇଂରାଜୀରେ ଯାହାକୁ Norm (ନର୍ମ) କହନ୍ତି, ତାହା ଦୃଢ଼ ଭାଷାରେ ଅଭିବ୍ୟକ୍ତ କରିଥିଲେ; ଯଥା;—

କବିସୂକ୍ତି ଅନ୍ତରେ ଯେ ଏମନ୍ତ ଭାବିତ,
କଲି କାମିନୀ ବର୍ଣ୍ଣନା କରି ବହୁ ଗୀତ।
କେଉଁ କଥା ଅଛି ତହିଁ କୃଷ୍ଣକଥା ଥାଉଁ,
କଲ୍ପିତ୍ରି ଯାହା ଅବିଘ୍ନେ ସମାପତ ହେଉ।

କବିସମ୍ରାଟଙ୍କ ପରବର୍ତ୍ତୀ ମହାକବି ଅଭିମନ୍ୟୁ ସାମନ୍ତସିଂହାର ଯେ କି କବିସମ୍ରାଟଙ୍କୁ ଗୁରୁଜ୍ଞାନ କରି ଲେଖିଥିଲେ "ଉପଇନ୍ଦ୍ର ପଦ ଅଭିମନ୍ୟୁ ମନୁ, ଉପେକ୍ଷା ଯେ ନୋହିବ ତ ଧନୁ ଧନୁ", ସେ ମଧ୍ୟ "ସୁଲକ୍ଷଣା" "ପ୍ରେମଚନ୍ଦ୍ରାମଣି" ଆଦି ବହୁ ଶୃଙ୍ଗାର କାବ୍ୟ ଲେଖିଥିଲେ ସୁଦ୍ଧା ତାଙ୍କ ପ୍ରତିଭାର ଶ୍ରେଷ୍ଠ ଉପାୟନ "ବିଦଗ୍ଧ ଚିନ୍ତାମଣି"କୁ ସେ ସର୍ବଲୋକ ମହେଶ୍ୱରଙ୍କ ପାଦପଦ୍ମତଳେ ସମର୍ପଣ କରିଥିଲେ। "ବିଦଗ୍ଧ ଚିନ୍ତାମଣି"ରୁ ପ୍ରତିପାଦିତ ହୁଏ ଯେ କବିତାର ତୁଙ୍ଗ ଆଦର୍ଶ ହେଉଛି ପାଠକକୁ ପରବ୍ରହ୍ମଙ୍କ ଭାବରେ ପୂର୍ଣ୍ଣ ଭାବିତ କରି ତା ଜୀବନକୁ ଚିନ୍ମୟ ରାଜ୍ୟର ଅଭିମୁଖୀ କରିବା; ଏ ଆଦର୍ଶ ଯେଉଁ ପରିମାଣରେ ଯେଉଁ ରଚନାରେ ଉପଲବ୍ଧ ସେ ରଚନା ସେହି ପରିମାଣରେ ଉଦାତ୍ତ, ସେହି ପରିମାଣରେ ଲୋକୋତ୍ତର—

"ଧନ ଅଭିମନ୍ୟୁ ଜୀବ
ରାଧା-ଭାବ ଭାବି ବାହାରି ଯିବ
ସତେ ଏ ଭାଗ୍ୟ କି ଦେଖାଯିବ
ସୁଜନେ ହେ !"

ଅଥବା

"ଝୁରି ବଉଳ ମାଳର
ଝୁଲଣ ରାଧା କୃଷ୍ଣର
ଝୁଲାଇ ଦେବ କି ଏ ଚରଣ ନିଜ ଭଣେ ସାମନ୍ତ ସିଂହାର ॥"

ଏସବୁ ପଂକ୍ତି ଓଡ଼ିଆ ସାହିତ୍ୟକୁ ବାସ୍ତବିକ ଉଦାତ୍ତ ଲୋକୋତ୍ତର ପର୍ଯ୍ୟାୟକୁ ନେଇ ଯାଇଅଛି। କବିସମ୍ରାଟଙ୍କ କୃତିମାନଙ୍କରେ ଏତାଦୃଶ ପଂକ୍ତିମାନଙ୍କର ପ୍ରାଚୁର୍ଯ୍ୟ ହିଁ ପରିଲକ୍ଷିତ ହୁଏ।

କଳିଙ୍ଗର କବିମାନେ ପୁରୁଷାର୍ଥକୁ ପରମ ପୁରୁଷାର୍ଥଠାରୁ ଏକାନ୍ତ ଭିନ୍ନ ବୋଲି ଜ୍ଞାନ କରି ନାହାନ୍ତି। ତେଣୁ ଶୃଙ୍ଗାର କାବ୍ୟକବିତା ରଚନାରେ ଧର୍ମ ହିଁ ସେମାନଙ୍କ ଲେଖନୀର ନିୟାମକ ହୋଇଅଛି। ଯେଉଁ ଧର୍ମ-ଅବିରୁଦ୍ଧ କାମକୁ ଗୀତାରେ ଭଗବାନ୍ ନିଜର ସ୍ୱରୂପ ବୋଲି ଅଭିହିତ କରିଅଛନ୍ତି (ଧର୍ମାବିରୁଦ୍ଧୋ କାମୋହଂ ଭୂତେଷୁ ଭରତର୍ଷଭ), ସେହି ଧର୍ମ-ଅବିରୁଦ୍ଧ କାମହିଁ ଯାହାହିଁ ହୋଇଛି କବିସମ୍ରାଟଙ୍କ ରଚନାର

ଉପଜୀବ୍ୟ । କାମକ୍ରିୟା ସୃଷ୍ଟିର ସ୍ଥିତି ନିମନ୍ତେ ଅପରିହାର୍ଯ୍ୟ । ଧର୍ମର ସରଣୀରେ ଓ ସାମାଜିକ ଶାଳୀନତାର ସୀମା ମଧ୍ୟରେ ରହିଲେ ଏହା ପୂର୍ଣ୍ଣ ନିର୍ଦ୍ଦୋଷ । କଳିଙ୍ଗର କବିମାନେ ଲୋକରଞ୍ଜନ ନିମନ୍ତେ ଏ ସବୁ କାବ୍ୟକବିତା ରଚନା କରୁଥିଲେହେଁ ଲୋକରଞ୍ଜନର ପୀଠରେ କବିତା ରଚନାର ଅନାବିଳ ଆଦର୍ଶକୁ କେବେହେଲେ ବଳି ଦେଇ ନାହାନ୍ତି । ମାତୃ-ସାହିତ୍ୟ ସଂସ୍କୃତର ଆଦର୍ଶଠାରୁ କଳିଙ୍ଗ-ସାହିତ୍ୟର ଆଦର୍ଶ କେଉଁଠି ଭିନ୍ନ ହୋଇନାହିଁ ।

କବିସମ୍ରାଟ ଉପେନ୍ଦ୍ର ଭଞ୍ଜ ରାମ-ତାରକ ମନ୍ତ୍ରରେ ସିଦ୍ଧ ହୋଇ ଥିବାରୁ ସେ ରଚନାଦର୍ଶର ଭଙ୍ଗିମାରେ ଉପନୀତ ହୋଇ ଅଛନ୍ତି । ତାଙ୍କର ସମସ୍ତ ରଚନା ପରଂବ୍ରହ୍ମ ଶ୍ରୀରାମଙ୍କ ନିକଟରେ ନୈବେଦ୍ୟ । ତାଙ୍କ କାବ୍ୟମାନଙ୍କର ଛାନ୍ଦମାନଙ୍କ ଉପସଂହାରରେ ସେ ସର୍ବଦା ପରଂବ୍ରହ୍ମ ଶ୍ରୀରାମଙ୍କଠାରେ ଆତ୍ମ-ନିବେଦନ କରିଅଛନ୍ତି । ଲାବଣ୍ୟବତୀ, କୋଟି ବ୍ରହ୍ମାଣ୍ଡସୁନ୍ଦରୀ, ପ୍ରେମସୁଧାନିଧି ଆଦି ଶୃଙ୍ଗାରି କାବ୍ୟମାନଙ୍କରେ ମାନବିକ ପ୍ରେମର ବିଭିନ୍ନ ପର୍ଯ୍ୟାୟ ନିପୁଣ ଭାବରେ ଚିତ୍ରିତ ହୋଇ ସାରିଲା ପରେ ଛାନ୍ଦମାନଙ୍କର ଉପସଂହାରରେ କବିସମ୍ରାଟଙ୍କ ଆତ୍ମନିବେଦନର ଉପକ୍ରମ କରାଯାଇଅଛି । ଏଥିରୁ ସ୍ପଷ୍ଟ ଉପଲବ୍‌ଧି ହୁଏ ଯେ କବିସମ୍ରାଟ ଜୀବନର ସକଳବିଧ ପ୍ରକାଶ ପରି ତାଙ୍କ ଶୃଙ୍ଗାରି କାବ୍ୟମାନଙ୍କୁ ପରଂବ୍ରହ୍ମ ଶ୍ରୀରାମଚନ୍ଦ୍ରଙ୍କୁ ନୈବେଦ୍ୟରୂପେ ଅର୍ପଣ କରିଥିଲେ ।

ଲାବଣ୍ୟବତୀ କାବ୍ୟର ଦ୍ୱାଦଶ ଛାନ୍ଦର ଉପସଂହାରରେ କବିସମ୍ରାଟ ଯାହା କହିଅଛନ୍ତି ତାହା ଏଥିର ପୋଷକତା କରୁଅଛି; ଯଥା—

"ହେ ରାମ କାମସୁନ୍ଦର ଗୁଣବନ୍ତ ଶିଖିମୁଖ ଧନୁ ଧାରଣ
ଚିତାମ୍ବୁଜମୁଖୀ ରତି ପ୍ରମୋହିତ ହରିମିତ୍ରପଣ ପ୍ରମାଣ
ଜାଣ ବିରହ । ବିପତ୍ତିହର ତତପର
କହେ ଉପଇନ୍ଦ୍ର ଭଞ୍ଜ ବୀରବର ଏ ଛାନ୍ଦ ଅତି ମନୋହର"

ତାଙ୍କର ରସକାବ୍ୟମାନଙ୍କର ବହୁ ଉଦ୍ଧାରଯୋଗ୍ୟ ଉଦାହରଣ ମଧ୍ୟରୁ ଏହା ଏକତମ ମାତ୍ର ।

କବିସମ୍ରାଟ ଉପେନ୍ଦ୍ର ଭଞ୍ଜ ମର୍ଯ୍ୟାଦା-ପୁରୁଷୋତ୍ତମ ଶ୍ରୀରାମଚନ୍ଦ୍ରଙ୍କୁ ଦାମ୍ପତ୍ୟ ପ୍ରେମର ଆଦର୍ଶ କରି ଗ୍ରହଣ କରିଥିଲେ । ମର ସଂସାରରେ ଅବତାର ଗ୍ରହଣ କରି ରାମ ସୀତା ପରସ୍ପର ପ୍ରତି ବିବାହିତ ଜୀବନରେ ଯେଉଁ ଐକାନ୍ତିକ ପ୍ରେମ ଆଚରଣ କରିଥିଲେ, ତାହା ପତିପତ୍ନୀମାନଙ୍କର ଆଦର୍ଶ ହେଉ ଏହା ପରିବେଷଣ କରିବା ନିମନ୍ତେ ସେ ଶୃଙ୍ଗାରି କାବ୍ୟ ରଚନା କରିଥିଲେ । ସୀତା-ରାମଙ୍କ ବିବାହ, ସୀତା-ରାମଙ୍କ ସମ୍ଭୋଗ, ସୀତାରାମଙ୍କ ବିରହ ଓ ସୀତାରାମଙ୍କ ମିଳନର ସ୍ପଷ୍ଟ ଛାୟା ତାଙ୍କ ଶୃଙ୍ଗାରି କାବ୍ୟ ସୃଷ୍ଟିର ଛତ୍ରେ ଛତ୍ରେ ପ୍ରତିଭାତ ହୁଏ । ତେଣୁ ଶୃଙ୍ଗାରି କାବ୍ୟମାନଙ୍କୁ

ତାଙ୍କ ଆରାଧ୍ୟ ଠାକୁରଙ୍କୁ ନୈବେଦ୍ୟ କରି ସମର୍ପଣ କରିବାରେ ସେ କୁତ୍ରାପି କୁଣ୍ଠା ପ୍ରକାଶ କରିନାହାନ୍ତି । ତାଙ୍କ ଆଦର୍ଶ ଅନୁଯାୟୀ କୁଣ୍ଠାପ୍ରକାଶର କାରଣ ମଧ୍ୟ ନ ଥିଲା । କବିସମ୍ରାଟଙ୍କ ଶୃଙ୍ଗାରୀ କାବ୍ୟାବଳି ନଶ୍ୱରଜଗତ ଓ ଚିନ୍ମୟ ଜଗତ ମଧ୍ୟରେ ଅପୂର୍ବ ସୁନ୍ଦର ସେତୁର କାର୍ଯ୍ୟ କରୁଅଛି ।

ଜୀବନର ବିବିଧ ସମ୍ଭୋଗ ଓ ବିଶେଷ କରି ଶୃଙ୍ଗାର ସମ୍ଭୋଗକୁ ପରମ ପୁରୁଷାର୍ଥ ଲାଭର ଅନ୍ତରାୟ ବୋଲି ସ୍ଥୂଳଦୃଷ୍ଟିରେ ଜ୍ଞାନ କରାଯାଇଥାଏ; କିନ୍ତୁ ଏ ସକଳ ସମ୍ଭୋଗକୁ ପରମପୁରୁଷାର୍ଥ ଲାଭର ସୋପାନ କରି ଗଢ଼ି ନେବାର କଳା କବିସମ୍ରାଟ ତାଙ୍କ ଶୃଙ୍ଗାରୀ କାବ୍ୟମାନଙ୍କଦ୍ୱାରା କଳିଙ୍ଗ ଜାତିକୁ ଶିକ୍ଷା ଦେଇଅଛନ୍ତି । ଗୃହସ୍ଥ ହୋଇ କରି ମଧ୍ୟ, ଦାମ୍ପତ୍ୟ ଜୀବନର ନିଗୂଢ଼ ସମ୍ଭୋଗରେ ମଜ୍ଜିତ ରହି ମଧ୍ୟ ମାନବ ଯେ ଭବବନ୍ଧନରୁ ମୁକ୍ତିଲାଭ କରି ପରମପୁରୁଷାର୍ଥର ଅଧିକାରୀ ହୋଇ ପାରେ, ସୁସ୍ପଷ୍ଟ ବ୍ୟଞ୍ଜନାଦ୍ୱାରା କବିସମ୍ରାଟ ଏହା ତାଙ୍କ ଶୃଙ୍ଗାରୀ କାବ୍ୟମାନଙ୍କରେ ଅଭିବ୍ୟକ୍ତ କରିଅଛନ୍ତି । ଧର୍ମାଚରଣ ଓ ପରମପୁରୁଷାର୍ଥ ଅର୍ଜ୍ଜନ କେବଳ ବ୍ରହ୍ମଚାରୀ ସନ୍ନ୍ୟାସୀ ପକ୍ଷରେ ସମ୍ଭବ, ଧର୍ମ ଅବିରୁଦ୍ଧ କାମକ୍ରିୟାରେ ଅଭ୍ୟସ୍ତ ଗୃହସ୍ଥ ପକ୍ଷରେ ନୁହେଁ, ଏହା କବିସମ୍ରାଟଙ୍କର ମତ ନ ଥିଲା । ତାଙ୍କ ଶୃଙ୍ଗାରୀ କାବ୍ୟାବଳି ଅକୁଣ୍ଠ କଣ୍ଠରେ ଗୃହସ୍ଥାଶ୍ରମର ମହିମାଗାନ ମାତ୍ର । ଶୃଙ୍ଗାରୀ କାବ୍ୟମାନଙ୍କୁ ଲୋକୋତ୍ତର ପ୍ରତିଭାର ଅପୂର୍ବ ରସାଣରେ ଅନୁରଞ୍ଜିତ କରି କବିସମ୍ରାଟ ସେ ସବୁକୁ କାମ ପ୍ରପଞ୍ଚର ଊର୍ଦ୍ଧ୍ୱତର କୋଟିକୁ ଉନ୍ନୀତ ବା (Sublimated) କରି ଅଛନ୍ତି । ତାଙ୍କ ମତରେ ବୈରାଗ୍ୟ ଅବଲମ୍ବନ କରି ନିଭୃତରେ ଭଗବଚ୍ଚିନ୍ତନ କରିବା ବ୍ରହ୍ମୋପଲବ୍ଧି ନିମନ୍ତେ ଯେତିକି ଫଳପ୍ରଦ ଧର୍ମଅବିରୁଦ୍ଧ କାମ କ୍ରିୟାରେ ନିବିଡ଼ ଭାବରେ ଆତ୍ମନିବେଶ କରି ନିଜ ମନକୁ ଭଗବଦଭିମୁଖୀ କରିବା ମଧ୍ୟ ବ୍ରହ୍ମୋପଲବ୍ଧି ନିମନ୍ତେ ତେତିକି ଫଳପ୍ରଦ ।

କବିସମ୍ରାଟ ବୈରାଗୀର ଧର୍ମ ଓ ଗୃହସ୍ଥର ଧର୍ମ ମଧ୍ୟରେ ପ୍ରଥିତ ହେଉଥିବା ଦୁର୍ଲଂଘ୍ୟ ଭେଦର ପ୍ରାଚୀରକୁ ସ୍ୱୀକାର କରି ନାହାନ୍ତି । ସେ ଉପଲବ୍ଧି କରିଥିଲେ ଯେ ବୈଦେହୀଶ ବିଳାସ, ରାମଲୀଳାମୃତ ଓ ଅବନାରସତରଙ୍ଗରେ ଯେଉଁ ପରଂବ୍ରହ୍ମଙ୍କର ପ୍ରତ୍ୟକ୍ଷ ଲୀଳା ବର୍ଣ୍ଣିତ ହୋଇଅଛି, ଲାବଣ୍ୟବତୀ, କୋଟି ବ୍ରହ୍ମାଣ୍ଡସୁନ୍ଦରୀ, ପ୍ରେମ ସୁଧାନିଧି ଓ ରସିକ ହାରାବଳୀ ପ୍ରଭୃତି ଶୃଙ୍ଗାରୀ କାବ୍ୟରେ ସେହି ପରଂବ୍ରହ୍ମଙ୍କର ଅପ୍ରତ୍ୟକ୍ଷ ଲୀଳାହିଁ ବର୍ଣ୍ଣିତ ହୋଇଅଛି । ସେ ପରଂବ୍ରହ୍ମ ଶ୍ରୀରାମଙ୍କଠାରେ ଜଗତର ପ୍ରତ୍ୟେକ ବସ୍ତୁ ଓ କ୍ରିୟାକୁ ଏବଂ ଜଗତର ପ୍ରତ୍ୟେକ ବସ୍ତୁ ଓ କ୍ରିୟାରେ ପରଂବ୍ରହ୍ମ ଶ୍ରୀରାମଙ୍କୁ ଦେଖୁଥିଲେ । ନିଜେ ରାମତାରକମନ୍ତ୍ରସିଦ୍ଧ ଯୋଗୀ ହୋଇ ଥିବାରୁ ଗୃହସ୍ଥ-ଜୀବନ ପ୍ରତି ତାଙ୍କର ପାରମ୍ପରିକ ଭାବରେ ଜୁଗୁପ୍ସା ରହିବାର କଥା । କିନ୍ତୁ ସେ ଗୃହସ୍ଥ ଧର୍ମକୁ ଭଗବତ୍ ଲୀଳା ପ୍ରକାଶର ରୂପାନ୍ତର ବୋଲି ଜ୍ଞାନ କରି ନିରତିଶୟ ମନ ଦମ୍ଭରେ ତହିଁର ସମ୍ଭୋଗର ଯେଉଁ ଚିତ୍ର ଅଙ୍କନ କରିଅଛନ୍ତି, ତାହା

ଭାରତର ସାରସ୍ୱତ ଇତିହାସରେ ଅଭୂତପୂର୍ବ । କବିସମ୍ରାଟ ଉପେନ୍ଦ୍ର ଭଞ୍ଜଙ୍କ ଚରିତ୍ର ଧୀର ବୃତ୍ତି ପୁରାଣର ଜନକ ମହାରାଜା ଓ ଇତିହାସର ରାଘବ ରାମାନନ୍ଦଙ୍କ ଚରିତ୍ର ଧୀର ବୃତ୍ତି ସହିତ ତୁଳନୀୟ ।

କବିସମ୍ରାଟ ଉପେନ୍ଦ୍ର ଭଞ୍ଜ ତାଙ୍କ ଇଷ୍ଟ ଶ୍ରୀରାମଚନ୍ଦ୍ରଙ୍କୁ କାମ-ସୁନ୍ଦର ରାମ କରି ଚିତ୍ର କରିଅଛନ୍ତି । ସେ ସୀତାଙ୍କର ଚିତ୍ତହାରୀ, ମିଥିଳାନାରୀଙ୍କ ଚିତ୍ତହାରୀ, ଦଣ୍ଡକାରଣ୍ୟର ମୁନିମାନଙ୍କ ଚିତ୍ତହାରୀ, ସୂର୍ପଣଖାର ଚିତ୍ତହାରୀ ଏବଂ ନିଖିଳ ସଂସାରବାସୀଙ୍କ ଚିତ୍ତହାରୀ । ଚିତ୍ତ-ହରଣ କରିବାପାଇଁ ତାଙ୍କର କାମ ତୁଲ୍ୟ ପ୍ରଭାବ ଥିଲେ ମଧ୍ୟ ସେ କାମ ନୁହନ୍ତି; ସେ ରାମ— ସେ ବନ୍ଧନର ହେତୁ ନୁହନ୍ତି; ବନ୍ଧନ ଛେଦନର ହେତୁ ।

ତଦ୍ରୂପ କବିସମ୍ରାଟ ଉପେନ୍ଦ୍ର ଭଞ୍ଜ କାମକ୍ରିୟା ବର୍ଣ୍ଣନ କରି ଯେଉଁ ସବୁ କାବ୍ୟ ଲେଖି ଅଛନ୍ତି, ସେ ସବୁ କାବ୍ୟର ଅନ୍ତର୍ଦ୍ଦେଶରେ ରାମହିଁ ବିଦ୍ୟମାନ । ତଦ୍ଦ୍ୱାରା ମାନବ ହୃଦୟରେ ଅବୈଧ କାମୋଦ୍ଦୀପନାର ସମ୍ଭାବନା ନାହିଁ; ବରଂ ତ କାମସୁନ୍ଦର ରାମଙ୍କ ପ୍ରତି ଭକ୍ତିର ଉଦ୍ରେକ ସହିତ ପବିତ୍ର ଦାମ୍ପତ୍ୟ ପ୍ରଣୟ ପ୍ରତି ସମ୍ମାନ ଉଦୟର ସମ୍ଭାବନାହିଁ ରହିଛି ।

ଜଗତ୍ ପ୍ରପଞ୍ଚର ଲୀଳା-ବର୍ଣ୍ଣନାର ମାଧୁରୀ ମାଧ୍ୟମରେ ଯେଉଁ ସାହିତ୍ୟ ମାନବକୁ ଭଗବଦଭିମୁଖୀ କରାଏ, ସେ ସାହିତ୍ୟକୁ "କାମ-ସୁନ୍ଦର ରାମ" ସାହିତ୍ୟ ବୋଲି ଅଭିହିତ କରାଯାଇପାରେ । କବିସମ୍ରାଟ ଉପେନ୍ଦ୍ର ଭଞ୍ଜଙ୍କ ବ୍ୟବହୃତ "କାମ-ସୁନ୍ଦର ରାମ" ଶବ୍ଦ-ପର୍ଯ୍ୟାୟର କ୍ରମସଂଯୋଗରେ ପରିବର୍ତ୍ତନ ଆଣିଲେ ସାହିତ୍ୟର ଚତୁର୍ବିଧ ସ୍ୱରୂପ ନିର୍ଣ୍ଣୀତ ହୋଇପାରେ ।

ଉପେନ୍ଦ୍ର ଭଞ୍ଜଙ୍କ ସାହିତ୍ୟକୁ "କାମ-ସୁନ୍ଦର ରାମ" ଆଖ୍ୟା ଦିଆଗଲେ ଅନ୍ୟ ଏକ ସାହିତ୍ୟକୁ "ରାମ ସୁନ୍ଦର କାମ" ଆଖ୍ୟା ଦିଆଯାଇପାରେ । ଆପାତତଃ ରାମ-ସୁନ୍ଦର ଅର୍ଥାତ୍ ବାହ୍ୟତଃ ଅତ୍ୟନ୍ତ ନିର୍ଦ୍ଦୋଷ ରଚନା ହେଲେହେଁ ଏହାର ଅନ୍ତର୍ଦ୍ଦେଶରେ କାମ ବିଦ୍ୟମାନ । ସେ ସାହିତ୍ୟକୁ ଆମ୍ଭେମାନେ "ରାମ-ସୁନ୍ଦର କାମ" ସାହିତ୍ୟ ବୋଲି ଅଭିହିତ କରିପାରୁଁ । ଏହା "କାମ-ସୁନ୍ଦର ରାମ" ସାହିତ୍ୟର ବିପରୀତ ଅଟେ ।

ଏ ଦୁଇ ପ୍ରକାର ସାହିତ୍ୟ ଛଡ଼ା ଆଉ ଯେଉଁ ଦୁଇ ପ୍ରକାର ସାହିତ୍ୟ ଅଛି, ସେମାନଙ୍କୁ "କାମ-ସୁନ୍ଦର କାମ" ସାହିତ୍ୟ ଓ "ରାମ-ସୁନ୍ଦର ରାମ" ସାହିତ୍ୟ କୁହାଯାଇପାରେ । କାମ-ସୁନ୍ଦର କାମ ସାହିତ୍ୟ ଆମୂଳଚୂଳ କାମପ୍ରଧାନ । ଏହାର ବାହ୍ୟ କାମୋଦ୍ଦୀପକ ଏବଂ ଅନ୍ତର ମଧ୍ୟ କାମୋଦ୍ଦୀପକ ।

ରାମ-ସୁନ୍ଦର ରାମ ସାହିତ୍ୟ ଉପରୋକ୍ତ ତୃତୀୟ ପ୍ରକାର ସାହିତ୍ୟର ବିପରୀତ ଅଟେ । ଏହା ମହିମାରେ ଉପରୋକ୍ତ ତିନି ପ୍ରକାର ସାହିତ୍ୟଠାରୁ ଉଚ୍ଚତର । ଏହାର

ବାହ୍ୟରେ ରମ୍ୟ; ଅନ୍ତରରେ ମଧ୍ୟ ରମ୍ୟ । ଶ୍ରୀମଦ୍ ଭଗବଦ୍‌ଗୀତା ଏହି ଶ୍ରେଣୀର ସାହିତ୍ୟ ଅଟେ ।

ତେଣୁ ପୃଥିବୀରେ ଯେତେ ଯେଉଁଠି ସାହିତ୍ୟ ସୃଷ୍ଟି ହୋଇଅଛି ବା ହେଉଅଛି, ସେ ସମସ୍ତ ସାହିତ୍ୟକୁ କାମ-ସୁନ୍ଦର ରମ୍ୟ ସାହିତ୍ୟ, ରମ୍ୟ-ସୁନ୍ଦର କାମ ସାହିତ୍ୟ; କାମ ସୁନ୍ଦର କାମ ସାହିତ୍ୟ ଓ ରମ୍ୟ-ସୁନ୍ଦର ରମ୍ୟ ସାହିତ୍ୟ—ଏହି ଚାରି ନିର୍ଦ୍ଦିଷ୍ଟ ପର୍ଯ୍ୟାୟରେ ବିଭକ୍ତ କରାଯାଇ ପାରେ ।

କବିସମ୍ରାଟଙ୍କ ସମଗ୍ର ସାହିତ୍ୟ "କାମ-ସୁନ୍ଦର ରମ୍ୟ" ସାହିତ୍ୟ ପର୍ଯ୍ୟାୟର ଅନ୍ତର୍ଭୁକ୍ତ ଅଟେ ।

କଳିଙ୍ଗରେ ବର୍ତ୍ତମାନ ଯେଉଁ ସାହିତ୍ୟ ସୃଷ୍ଟି ହେଉଅଛି, ତହିଁରୁ ଅଧିକାଂଶ ରମ୍ୟ-ସୁନ୍ଦର କାମ ସାହିତ୍ୟ ଅଥବା କାମ-ସୁନ୍ଦର କାମ ସାହିତ୍ୟ ଅଟେ । ଜଗତ୍ ପ୍ରପଞ୍ଚର ଊର୍ଦ୍ଧ୍ୱରେ ଅବସ୍ଥିତ ଚିନ୍ମୟ ଭଗବଦ୍ରାଜ୍ୟର ସନ୍ଦେଶ ଏ ସାହିତ୍ୟରୁ ଆଶା କରିବା ବୃଥା । ମାନବାତ୍ମାକୁ ଚିରକାଳ ଅଧୋମୁଖୀ କରି ରଖି ତାକୁ ଜଗତ୍ ପ୍ରପଞ୍ଚର ଆବର୍ତ୍ତରେ ନିତ୍ୟକାଳ ଘୂରାଇବାହିଁ ଏ ସାହିତ୍ୟର ଲକ୍ଷ୍ୟ ଅଟେ । ପ୍ରଣୟକୁ ଜନ୍ମଜନ୍ମାନ୍ତରର ଶାଶ୍ୱତ ସମ୍ବନ୍ଧ ବୋଲି ସ୍ୱୀକାର ନ କରି ତାହାକୁ ଆକସ୍ମିକ ଓ ତାତ୍କାଳିକ ବୋଲି ଜ୍ଞାନ କରୁଥିବାରୁ ପ୍ରେମର ପ୍ରକୃତ ସ୍ୱରୂପ ବିଷୟରେ କେହି ଅବହିତ ହେଉ ନାହାନ୍ତି । ଅଧୁନାତନ ଉପନ୍ୟାସ ଲେଖକମାନେ ଏ ପନ୍ଥାର ଅନୁଗାମୀ ହୋଇ କୁସଂସ୍କୃତିର ପରିପୋଷକତା କରୁଅଛନ୍ତି । ମୁଁ ଏହାକୁ ଜାତୀୟ ଜୀବନର ଘୋର ଦୁର୍ଗତି ବୋଲି ମନେ କରୁଅଛି । କଳିଙ୍ଗର ନିରବଚ୍ଛିନ୍ନ ଆଧ୍ୟାତ୍ମିକ ପରଂପରା ରହି ଥିବାରୁ ଜଡ଼ବାଦୀ ସାହିତ୍ୟ ସପକ୍ଷରେ ଯେତେ ପ୍ରଭାବଶାଳୀ ପରିପ୍ରଚାର ହେଲେ ମଧ୍ୟ କଳିଙ୍ଗରେ ଏହା ବହୁତ ଦିନ ଚେର ମାଡ଼ି ତିଷ୍ଠି ପାରିବ ନାହିଁ । ଏ ସାହିତ୍ୟ ମାନବାତ୍ମାକୁ ଅମୃତ ରାଜ୍ୟରୁ ବଞ୍ଚିତ କରି ରଖୁଛି—ନଶ୍ୱର ଭୋଗ ବିଳାସର ଚିତ୍ର ଦେଇ ମାନବାତ୍ମାକୁ ତତ୍‌ପ୍ରତି ଅଭିମୁଖୀ ଓ ଲାଳସୀ କରୁଛି । ଏହି ମରଜଗତର ଭଙ୍ଗୁର ଲୀଳାକୁ ଏହା ପାଠକଙ୍କ ଆଗରେ ମନୋରମ ଉପଭୋଗ୍ୟ ସାମଗ୍ରୀ ରୂପେ ଉପସ୍ଥାପିତ କରୁଛି ଏବଂ ଯାବତୀୟ ନୈତିକ ଅଧଃପାତର ମୂଳ କାରଣ ଅବୈଧ ଯୌନ-ସମ୍ପର୍କକୁ ବିକୃତ ଅର୍ଥ କରି ପ୍ରେମ ନାମରେ ପ୍ରଖ୍ୟାତ କରୁଛି । ଏତଦ୍ୱାରା ସମାଜ ଅଙ୍ଗରେ ଉତ୍କଟ ବିଷ ସଞ୍ଚାରପୂର୍ବକ ସମାଜର ନୈତିକ ଭିତ୍ତିକୁ କ୍ରମଶଃ ଦୁର୍ବଳରୁ ଦୁର୍ବଳତର କରାଯାଉଅଛି । ବ୍ରିଟିଶ ରାଜତ୍ୱ ଆରମ୍ଭ ହେଲାଦିନୁ ଇଂରାଜି ଶିକ୍ଷାର ପ୍ରସାର ଫଳରେ କେତେକ କବି ଦିଗ୍‌ଦର୍ଶନ ଦ୍ୱାରା ଜଡ଼ବାଦମୂଳକ ପାଶ୍ଚାତ୍ୟ ଆଦର୍ଶମାନଙ୍କୁ ସେମାନଙ୍କ ସାହିତ୍ୟ ସୃଷ୍ଟି ମାଧ୍ୟମରେ ଭାରତ ତଥା କଳିଙ୍ଗକୁ ଆମନ୍ତ୍ରଣ କରି ଘେନି ଆସିଛନ୍ତି ଏବଂ ଆମ୍ଭମାନଙ୍କର ରାଜନୈତିକ ସ୍ୱାଧୀନତା ଲବ୍ଧ ହୋଇଥିଲେ ସୁଦ୍ଧା ଆମ୍ଭେମାନେ

ସାସ୍କୃତିକ ପରାଧୀନତାର କଠୋର ନିଗଡ଼ରେ ଏ ପର୍ଯ୍ୟନ୍ତ ମଧ୍ୟ ଶୃଙ୍ଖଳିତ ହୋଇ ରହିଥାଏଁ । ଆମ୍ଭେମାନେ ନିର୍ମମ ଆତ୍ମ-ସମୀକ୍ଷା କରି ସାରସ୍ୱତ ରାଜ୍ୟରେ ପୂର୍ଣ୍ଣ ସଂସ୍କାର ପ୍ରବର୍ତ୍ତନ ନ କଲେ ସାଂସ୍କୃତିକ ସ୍ୱାଧୀନତା କଦାଚ ଲାଭ କରିପାରିବା ନାହିଁ । ତେଣୁ କଳିଙ୍ଗରେ କଳିଙ୍ଗଭାରତୀ ଅନୁଷ୍ଠାନର ପ୍ରତିଷ୍ଠା ଏବଂ କବିସମ୍ରାଟ ଓ କବିସୂର୍ଯ୍ୟାଦି ଜାତୀୟ କବିମାନଙ୍କ ଜୟନ୍ତୀର ଉଦ୍‌ଯାପନ । ଏ ଜୟନ୍ତୀମାନଙ୍କ ଅବକାଶରେ ଆମ୍ଭେମାନେ ଜାତିର ସାରସ୍ୱତ ସୃଷ୍ଟିର ସମୀକ୍ଷା କରୁଥାଉଁ ଏବଂ କି ଉପାୟ ଅବଲମ୍ବନ କଲେ ଆମ୍ଭେମାନେ ଜଡ଼ବାଦୀ ସାହିତ୍ୟ ପ୍ରସାରର ବିଷମୟ ଫଳରୁ ଜାତିକୁ ରକ୍ଷା କରିପାରିବା, ତାହା ନିର୍ଣ୍ଣୟ କରୁଥାଉଁ । କହିବା ବାହୁଲ୍ୟ ଯେ କବିସମ୍ରାଟ ଉପେନ୍ଦ୍ର ଭଞ୍ଜଙ୍କ କାମ-ସୁନ୍ଦର ରାମ ସାହିତ୍ୟର ଉତ୍ତରୋତ୍ତର ଅନୁଶୀଳନ ଦ୍ୱାରାହିଁ ଆମ୍ଭେମାନେ ଜାତିକୁ ଅଧିକରୁ ଅଧିକ ଭଗବଦଭିମୁଖୀ କରି ପାରିବା ଏବଂ ଇହସର୍ବସ୍ୱ ଜଡ଼ବାଦୀ ସାହିତ୍ୟର ପ୍ରବଳ ବନ୍ୟାର ମୁଖରୁ ଜାତିକୁ ରକ୍ଷା କରିବା ନିମନ୍ତେ ସୁଦୃଢ଼ ବନ୍ଧ ନିର୍ମାଣ କରିପାରିବା । ଉତ୍କଳର ଆଧ୍ୟାତ୍ମିକ ଦୃଷ୍ଟିକୁ ସମ୍ୟକ୍ ଅବବୋଧ କରିବାକୁ ମସ୍ତିଷ୍କ ନ ଥିବା ପଣ୍ଡିତମ୍ମନ୍ୟ ବ୍ୟକ୍ତିମାନେ ସାହିତ୍ୟ ସମାଲୋଚନାର ବଡ଼ପଣ୍ଡା ସାଜି କେତେକ ଇଂରାଜି ଶିକ୍ଷିତ ସ୍ୱଳ୍ପଧୀ ବ୍ୟକ୍ତିଙ୍କୁ ମାତୃ-ସାହିତ୍ୟ ସମ୍ବନ୍ଧରେ ବିଭ୍ରାନ୍ତ କଲେଣି ଏବଂ ଯେଉଁ ଦିନୁ ଏମାନଙ୍କ ଅସ୍ପୃହଣୀୟ ପ୍ରଭାବ ଫଳରେ କଳିଙ୍ଗର ଶିକ୍ଷିତ ସମାଜରୁ କବିସମ୍ରାଟ ଉପେନ୍ଦ୍ର ଭଞ୍ଜଙ୍କ "କାମ-ସୁନ୍ଦର ରାମ" ସାହିତ୍ୟର ଅନୁଶୀଳନ ହ୍ରାସଲାଭ କଲାଣି, ସେହି ଦିନୁ ଶିକ୍ଷିତମାନଙ୍କର ଜଡ଼ବାଦୀ କାବ୍ୟକବିତା ପ୍ରତି ଅନୁରାଗ ବଢ଼ି ଚାଲିଛି ଏବଂ ଗତ ୭୫ ବର୍ଷ ମଧ୍ୟରେ ସାହିତ୍ୟ ପତ୍ରପତ୍ରିକାର ସମ୍ମାନିତ ସମ୍ପାଦକମାନଙ୍କର ବିଭ୍ରାନ୍ତ ତରୁଣ ଲେଖକମାନଙ୍କ ପ୍ରତି ଆତ୍ୟନ୍ତିକ ବାତ୍ସଲ୍ୟଯୋଗୁଁ ଏ ଅନୁରାଗର ସ୍ରୋତ ବନ୍ଦ ହେବାକୁ ନାହିଁ । ଅଧିକାଂଶ ଆଧୁନିକ ଓ ଅତ୍ୟାଧୁନିକ କବିତା ଅହଙ୍କାରରେ ଦୂଷିତ, ବ୍ୟକ୍ତିକେନ୍ଦ୍ରିକ ଅଭିମାନରେ ଭାରାକ୍ରାନ୍ତ ଓ ଯୌନ-ସ୍ୱୈରାଚାରର ପଲ୍ୱଳରେ ପଙ୍କିଳ । ଅଥଚ ସାହିତ୍ୟିକ ପତ୍ରପତ୍ରିକାମାନଙ୍କରେ ଏ ସବୁ କବିତା ଯେଉଁ ସମ୍ମାନ ପାଇ ଅଛନ୍ତି, ସେ ସମ୍ମାନ ଜଡ଼ବାଦ ପ୍ରତି ଆମ୍ଭମାନଙ୍କର ସ୍ୱେଚ୍ଛାଦତ୍ତ ଉପାୟନ ଛଡ଼ା ଆଉ କଅଣ ହୋଇପାରେ ?

କଳିଙ୍ଗର କବିତା ବ୍ରିଟିଶ ଯୁଗର ଆରମ୍ଭ ପର୍ଯ୍ୟନ୍ତ ସ୍ୱଚ୍ଛନ୍ଦ, ସାବଲୀଳ, ଅଳଙ୍କାରମୟ ଓ ସଙ୍ଗୀତର ଦିବ୍ୟ ମୂର୍ଚ୍ଛନାରେ ଝଙ୍କୃତ ଥିଲା । ଯୁଗ ଯୁଗ ଧରି ନିରବଚ୍ଛିନ୍ନ ସାଧନାଫଳରେ କଳିଙ୍ଗର କବିମାନେ କବିତାକୁ ମଧୁମୟ କରିବା ନିମନ୍ତେ ପଦଯୋଜନାର ଅନୁପମ ଗୃଭୂଷା ଓ ସୁଗେୟ କରିବା ନିମନ୍ତେ ଶତ ଶତ ସଂଖ୍ୟକ ଛନ୍ଦବୃତ୍ତ ଓ ରାଗରାଗିଣୀ ଆବିଷ୍କାର କରିଥିଲେ । ଜାତିର ଏ ଦିବ୍ୟ ସାଧନାର ଚରମ ଉତ୍କର୍ଷ ଲବ୍ଧ ହୋଇଥିଲା କବିସମ୍ରାଟ ଉପେନ୍ଦ୍ର ଭଞ୍ଜଙ୍କ କୃତିମାନଙ୍କରେ । କବିସମ୍ରାଟଙ୍କ ପରବର୍ତ୍ତୀ ଅଭିମନ୍ୟୁ ସାମନ୍ତସିଂହାର, କବିସୂର୍ଯ୍ୟ

ବଳଦେବ ରଥ ଓ ଯଦୁମଣି ମହାପାତ୍ର କବିସମ୍ରାଟଙ୍କ ପଦାଙ୍କ ଅନୁସରଣ କରି କଳିଙ୍ଗର କବିତା-ସାହିତ୍ୟକୁ ଅଧିକରୁ ଅଧିକ ମୂର୍ଚ୍ଛନାମୟ କରିଥିଲେ । କଳିଙ୍ଗର ଜାତୀୟ ସାହିତ୍ୟ କହିଲେ ଏ ପୂର୍ବସୂରୀମାନଙ୍କ ସାହିତ୍ୟକୁହିଁ ବୁଝାଇଥାଏ । କିନ୍ତୁ ଅତ୍ୟନ୍ତ ପରିତାପର ବିଷୟ ଯେ ପାଶ୍ଚାତ୍ୟଖଣ୍ଡର ଜଡ଼ବାଦୀ ଚିନ୍ତାଧାରାକୁ ଆଖିବୁଜି ଆମଦାନୀ କରିବା ସଙ୍ଗେ ସଙ୍ଗେ ବ୍ରିଟିଶ ପରବର୍ତ୍ତୀ ଯୁଗର ଆଧୁନିକ ତଥା ଅତ୍ୟାଧୁନିକ କବିମାନେ କି ପଦଯୋଜନା କି ଛନ୍ଦୋବିଳାସ ସବୁଥିରେ କଳିଙ୍ଗର ପ୍ରତିଷ୍ଠିତ ପରମ୍ପରାକୁ ଧ୍ୱଂସ କରିବାରେ ଲାଗିଅଛନ୍ତି । ସେମାନଙ୍କର ଏ ଆତ୍ମମୁଖ୍ୟ ବିରୁଦ୍ଧରେ ପ୍ରବଳ ଜନମତ ସୃଷ୍ଟି କରିବାକୁ ହେବ । ରାଜନୀତି କ୍ଷେତ୍ରରେ ଜାତିପିତା ମହାତ୍ମାଗାନ୍ଧୀ ଯେପରି ପ୍ରତିପକ୍ଷକୁ ସମ୍ମାନଦେଖାଇ ଅହିଂସ ଉପାୟରେ ଦେଶର ରାଜନୈତିକ ସ୍ୱାଧୀନତାର ପଥ ସୁଗମ କରିଥିଲେ, ଦେଶର ସାଂସ୍କୃତିକ ସ୍ୱାଧୀନତା ଆନୟନ କରିବାକୁ ଆମ୍ଭମାନଙ୍କୁ ମଧ୍ୟ ଅନୁରୂପ ଉପାୟକୁ ପାଥେୟ କରି ଅଗ୍ରସର ହେବାକୁ ହେବ । କଳିଙ୍ଗର ସାହିତ୍ୟରୁ ଜଡ଼ବାଦୀ ଚିନ୍ତାଧାରାର ବିଲୋପ ସାଧନ ଓ ତହିଁରେ କଳାମୟତା ଓ ସଙ୍ଗୀତମୟତାର ପୁନଃପ୍ରବର୍ତ୍ତନହିଁ ଆମ୍ଭମାନଙ୍କର ଧ୍ୟେୟ । କବିସମ୍ରାଟ ଉପେନ୍ଦ୍ର ଭଞ୍ଜଙ୍କ କାମ-ସୁନ୍ଦର ରାମ ସାହିତ୍ୟ ଚିରକାଳକୁ ଆମ୍ଭମାନଙ୍କର ଆଦର୍ଶ ହେଉ । ତହିଁରୁ ରାମସୁନ୍ଦର ରାମ ସାହିତ୍ୟ ଅବଶ୍ୟ ବିକଶିତ ହେବ ।

କବିସମ୍ରାଟ ଉପେନ୍ଦ୍ର ଭଞ୍ଜ ଏକାଧାରରେ କର୍ମଯୋଗୀ, ଜ୍ଞାନଯୋଗୀ ଓ ଭକ୍ତିଯୋଗୀ । ଜଗତ୍‌ପ୍ରପଞ୍ଚକୁ ପୂର୍ଣ୍ଣ ପରିହାର କରି ଅଖଣ୍ଡ ବୈରାଗ୍ୟରେ ପରମ-ପୁରୁଷାର୍ଥ ଲାଭ କରାଯାଇପାରେ । କିନ୍ତୁ କବିସମ୍ରାଟ ଉପେନ୍ଦ୍ର ଭଞ୍ଜ କଳିଙ୍ଗ ଜାତିକୁ ଏ ପନ୍ଥାରେ ଗତି କରିବାକୁ ଶିକ୍ଷା ଦେଇ ନାହାନ୍ତି । ଜଗତ୍‌ପ୍ରପଞ୍ଚ ମଧ୍ୟରେ ରହି ଧର୍ମ-ଅବିରୁଦ୍ଧ କାମନିଧ୍ୟାନ ଆଚରଣ ଦ୍ୱାରା କ୍ରମଶଃ ଚିତ୍ତକୁ ରାମତଲ୍ଲୀନ କରିବା ଓ ପରିଣାମରେ ପରମ ପୁରୁଷାର୍ଥ କରଗତ କରିବାହିଁ କଳିଙ୍ଗ ଜାତିକୁ ତାଙ୍କର ଅଭ୍ରାନ୍ତ ସନ୍ଦେଶ । ସେ ଯଦି କଳିଙ୍ଗବାସୀଙ୍କୁ କବିତାର ମାଧ୍ୟମରେ ପର୍ବତ ଗୁହାରେ ରହି ଯୋଗୀ ହେବା ନିମନ୍ତେ, ସଂସାରରେ ରହି ବିରକ୍ତ ସନ୍ନ୍ୟାସୀ ହେବା ନିମନ୍ତେ ପ୍ରେରଣା ଦେଇଥାନ୍ତେ ସେ ନିଶ୍ଚୟ ସଂପୂଜିତ ହୋଇଥାନ୍ତେ; କିନ୍ତୁ କଳିଙ୍ଗ ଜାତି ତାଙ୍କୁ କଦାପି ଏତେ ନିବିଡ଼ ଭାବରେ ଜୀବନର ସକଳ କ୍ଷେତ୍ରରେ ଏପରି ଆପଣାର କରିପାରି ନ ଥାନ୍ତା । ସେ ରାଜସଭାରେ ବିଦ୍ୱନ୍ମଣ୍ଡଳୀର, ପଥରେ ପଦଗୃହୀ ପାନ୍ଥର, କୃଷିକ୍ଷେତ୍ରରେ କର୍ଷଣନିରତ କୃଷି-ଜୀବୀର, କାନ୍ତା-ବିରହ-ଭାରବିନମ୍ର ବିଦେଶପ୍ରୟାତ କାନ୍ତର, ଅନ୍ତଃପୁରଚାରିଣୀ ବିରହାନଳବିଦଗ୍ଧା କାନ୍ତପ୍ରାଣା କାନ୍ତାର ଓ ଜନତାକୁ ବିନୋଦ-ବନ୍ୟାରେ ପ୍ଲାବିତ କରୁଥିବା ବିଳାସିନୀ ବାରାଙ୍ଗନାର ପ୍ରିୟତମ କବି ହୋଇ ପାରି ନ ଥାନ୍ତେ । ତାଙ୍କ କାମ-ସୁନ୍ଦର ରାମ କବିତାର ସମ୍ଭାର କଳିଙ୍ଗ ଜାତିର ସକଳ ସ୍ତରକୁ ଭେଦ କରି କଳିଙ୍ଗର ନିଖିଳ ଜନମନକୁ ତାଙ୍କର ବଶମ୍ବଦ କରିପାରିଛି ।

କବିସମ୍ରାଟ ଉପେନ୍ଦ୍ର ଭଞ୍ଜଙ୍କ କାମ-ସୁନ୍ଦର ରମ ସାହିତ୍ୟକୁ କାମ-ସୁନ୍ଦର କାମ ସାହିତ୍ୟ ବୋଲି ଗ୍ରହଣ କରିବା କେତେକ ସମାଲୋଚକଙ୍କର ପ୍ରତିଷ୍ଠିତ ପ୍ରମାଦ ହୋଇଗଲାଣି । ଭଞ୍ଜଙ୍କୁ କାମୁକ ଓ ଅଶ୍ଳୀଳ ବୋଲି ଘୋଷଣା କରିବା ଯେପରି ତ୍ରୁଟିମୂଳକ, ଓଡ଼ିଶାର ଦେଉଳମାନ କାମକେଳି ଚିତ୍ରରେ ଦୂଷିତ ହୋଇଛି ବୋଲି ଆକ୍ଷେପ କରିବା ସେହିପରି ଭ୍ରମାତ୍ମକ ।

କବିସମ୍ରାଟ ଉପେନ୍ଦ୍ର ଭଞ୍ଜ ଆନନ୍ଦର କବି, ଆଶାବାଦର କବି । କୁତ୍ରାପି ସେ ଜୀବନକୁ ନିରାନନ୍ଦ କରି ଚିତ୍ର କରି ନାହାନ୍ତି । ବର୍ତ୍ତମାନ ଯୁଗରେ ନୈରାଶ୍ୟର ଯେଉଁ ଘନ କୁଜ୍ଝଟିକା ସମାଜକୁ ଆଚ୍ଛନ୍ନ କରି ପକାଇଅଛି, ଅନେକ କ୍ଷେତ୍ରରେ ଯୁବକ ଯୁବତୀମାନେ ତନ୍ମଧ୍ୟରେ ମୁହ୍ୟମାନ ହୋଇ ଆତ୍ମହତ୍ୟାରେହିଁ ନିଷ୍କୃତି ଲୋଡ଼ୁ ଅଛନ୍ତି । ଏଥିର ପ୍ରକୃଷ୍ଟ ପ୍ରତିକାର ହେଉଅଛି କବିସମ୍ରାଟଙ୍କ ସାହିତ୍ୟର ଗଭୀର ଅନୁଶୀଳନ ଏଥିରେ ଛନ୍ଦେ ଛନ୍ଦେ ଜୀବନର ଉଚ୍ଛ୍ୱସିତ ପ୍ରକାଶ ରହିଛି, ସାମାଜିକ ଔଚିତ୍ୟ ଓ ସଂଯମର ଦୃଢ଼ ନିଗଡ଼ ରହିଅଛି ଏବଂ ଭଗବଦ୍‌ଭକ୍ତିର ଝଲକରେ ସବଂସ ଏହା ଉଦ୍‌ଭାସିତ ହୋଇଅଛି । ଯେଉଁମାନେ ଜୀବନକୁ ଶାଳୀନତା ସହିତ ଆଶାରେ ଓ ଉଲ୍ଲାସରେ ଭୋଗ କରିବାକୁ ଶିଖି ନ ପାରି ପଳାୟନପନ୍ଥୀ ହେଉଅଛନ୍ତି ଓ ଶେଷରେ ହାହାକାରରେ ନିମଜ୍ଜିତ ରହି ତିଳ ତିଳ ହୋଇ ଦଗ୍ଧ ହେଉଅଛନ୍ତି, ସେମାନଙ୍କ ପାଇଁ କବିସମ୍ରାଟଙ୍କ ସାହିତ୍ୟ ପ୍ରକୃତରେ ଅମୃତ ପ୍ରଲେପ । ଯେଉଁ ଦୃଷ୍ଟିଭଙ୍ଗୀ ନେଇ କବିସମ୍ରାଟଙ୍କ ସାହିତ୍ୟକୁ ଦେଖିବାର କଥା, କଳିଙ୍ଗର ଦୁର୍ଭାଗ୍ୟକୁ କେତେକ ପ୍ରଭାବଶାଳୀ ଇଂରାଜି-ଶିକ୍ଷିତ ଲୋକ ସେ ଦୃଷ୍ଟିଭଙ୍ଗୀ ନେଇ ତାହାକୁ ଦେଖିଲେ ନାହିଁ ଏବଂ ନିଜର ନବ୍ୟ ଆଦର୍ଶକୁ କବିସମ୍ରାଟଙ୍କ ମହତ୍ତ୍ୱ ଆକଳନ କରିବାରେ ପ୍ରୟୋଗ କରି ଗୁଡ଼ିଏ ଲୋକଙ୍କ ବିଭ୍ରାନ୍ତ ହେବାର କାରଣ ହେଲେ । କବିଙ୍କ କୃତିର ଗଭୀର ମର୍ମ ବୁଝିବାକୁ ଏମାନଙ୍କର ଇଚ୍ଛା ନ ଥିଲା ଏବଂ ପାଶ୍ଚାତ୍ତ୍ୟ ସଭ୍ୟତାର ମାନଦଣ୍ଡରେ ପ୍ରାଚ୍ୟ ସଭ୍ୟତାର ପରିମାପ ପାଇଁ ଏମାନେ ନିଜ ନିଜକୁ ଧୂରନ୍ଧର ମନେ କରୁଥିଲେ । ଏମାନେ ଦୂରନ୍ତ ଅଭିମାନରେ ଭାବିବାକୁ ଲାଗିଲେ ଯେ କଳିଙ୍ଗର ଜନମତ ବ୍ରିଟିଶମାନଙ୍କ ଆଗମନ ଆଗରୁ କବିସମ୍ରାଟଙ୍କ ସମ୍ପର୍କରେ ଯେଉଁ ସରଣୀରେ ଗତି କରିଥିଲା, ସେ ସରଣୀରୁ ତାକୁ ଟାଣି ଆଣିବାକୁ ହେବ ଏବଂ ସେମାନଙ୍କ ନବ୍ୟ ସମାଲୋଚନାକୁ ସମ୍ମାନ କରିବାପାଇଁ ଜନତାକୁ ବାଧ୍ୟ କରିବାକୁ ହେବ । ଏ ସମାଲୋଚକମାନେ କଳିଙ୍ଗରେ ସମାଲୋଚନାର ନୂତନ ଆଦର୍ଶ ସଂସ୍ଥାପନା କରିବାକୁ ଲାଗି ଅଛନ୍ତି ଓ ଶତାବ୍ଦୀ ଶତାବ୍ଦୀ ଧରି ଯେ କବିସମ୍ରାଟ ବୋଲି ଜନତାଦ୍ୱାରା ପୂଜିତ ହୋଇ ଆସିଅଛନ୍ତି, ସେ ପୁଣି କୁଆଡ଼େ ସମାଲୋଚନାର ମାନଦଣ୍ଡକୁ ପାଉନାହାନ୍ତି ବୋଲି ପରିପ୍ରଚାର ଆଜି ମଧ୍ୟ ଚାଲିଅଛି । ଭଞ୍ଜଜୟନ୍ତୀର ସମାରୋହହିଁ ଜନତାକର୍ତ୍ତୃକ ଏଥିର ପ୍ରକୃଷ୍ଟ ଜବାବ ।

ଆଜି ଏହି ଶୁଭ ବାସରରେ ଜାତି ତାର ସାରସ୍ୱତ ଓ ସାଂସ୍କୃତିକ ଗୌରବରେ ଉଦ୍‌ବୁଦ୍ଧ ହେଉ, ଜାତିର ଦୃଷ୍ଟି ନିର୍ମଳ ହେଉ, କବିସମ୍ରାଟ ଉପେନ୍ଦ୍ର ଭଞ୍ଜଙ୍କ କାମ-ସୁନ୍ଦର ରାମ ସାହିତ୍ୟ ଜାତିର ଐହିକ ଓ ପାରତ୍ରିକ ଜୀବନକୁ ସୁଖମୟ କରୁ ଏବଂ ଅତୀତ ପରି ଜାତିର ବର୍ତ୍ତମାନ ଓ ଭବିଷ୍ୟତ ମଧ୍ୟ ଶାଶ୍ୱତ ଆଧ୍ୟାତ୍ମିକ ସ୍ଥିତି ଉପରେ ପ୍ରତିଷ୍ଠିତ ହେଉ ।

ଜୟ ମା କଳିଙ୍ଗଭାରତୀ

★ ଗ୍ରନ୍ଥଭାଷା ସମବାୟ ପ୍ରେସ, କଟକ ★